# ନିଜ ଅଧିକାର ଦାନ୍ତିଚି ମାଡ଼ି

ଡକ୍ଟର କୃତ୍ତିବାସ ନାୟକ



# ନିଜ ଅଧିକାର ଜାଣିଛି ମୁହିଁ



## ଡକ୍ଟର କୃତ୍ତିବାସ ନାୟକ

ଅରୁଣ-ତରୁଣ
କେନ୍ଦୁଝର

# ନିଜ ଅଧିକାର ଜାଣିଛି ମୁହିଁ

(ଶିଶୁର ଅଧିକାର ଉପରେ ଆଧାରିତ କବିତା ସଂକଳନ)

| | |
|---|---|
| ରଚନା | ଡକ୍ଟର କୃତ୍ତିବାସ ନାୟକ<br>(ଜାତୀୟ ପୁରସ୍କାର ପ୍ରାପ୍ତ ଲେଖକ) |
| ଅଳଂକରଣ | ଶ୍ରୀ ରାଜେନ୍ଦ୍ର ସାହୁ |
| ପ୍ରକାଶକ | ଅରୁଣ - ତରୁଣ, କେନ୍ଦୁଝର |
| ମୁଦ୍ରଣ | ଜଗନ୍ନାଥ ପ୍ରୋସେସ୍, କଟକ |
| ପ୍ରଥମ ସଂସ୍କରଣ | ରଜ ସଂକ୍ରାନ୍ତି ୧୯୯୭ |
| ମୂଲ୍ୟ | ଦଶଟଙ୍କା ମାତ୍ର |

## NIZA ADHIKAR JANICHHI MUNHI

(Poems on Children's rights)

| | |
|---|---|
| Author | **Dr. Krutibas Nayak** |
| Art | Sri Rajendra Sahu |
| Publisher | ARUN - TARUN, Keonjhar |
| 1st Edition | 1997 |
| Rupees | **Ten Only** |

# ଆମର ଅଧିକାର

ପିଲାମାନେ ହେଉଛନ୍ତି ମାନବଜାତିର ଅମୂଲ୍ୟ ସଂପଦ।
ସେମାନଙ୍କର ଭାବନା ରାଜ୍ୟ ସଂପୂର୍ଣ୍ଣ ଅଲଗା। ସେମାନେ
ବଡ଼ମାନଙ୍କର କ୍ଷୁଦ୍ର ସଂସ୍କରଣ ନୁହନ୍ତି। ଏ' କଥାକୁ ବଡ଼ମାନେ
ବହୁତ ଡେରିରେ ବୁଝିଲେ। ତେଣୁ ପିଲାମାନଙ୍କୁ ତାଙ୍କର
ମୌଳିକ ଅଧିକାର ଫେରାଇ ଦେବାକୁ ଏବେ ଜୋର
ସୋରରେ ଉଦ୍ୟମ ଚାଲିଛି।

ଜାତିସଂଘର ସାଧାରଣ ପରିଷଦରେ ୧୯୮୯ ମସିହା
ନଭେମ୍ବର ୨୦ତାରିଖ ଦିନ ପିଲାମାନଙ୍କର ଅଧିକାର
ସଂପର୍କରେ ଏକ ଆଇନ ପ୍ରଣୟନ କରାଯାଇଛି। ଏହାକୁ
୧୯୧ଟି ଦେଶ ନିଜ ଦେଶରେ କାର୍ଯ୍ୟକାରୀ କରିବାକୁ ରାଜି
ହୋଇଛନ୍ତି। ଫଳରେ ୨୦୦୦ ମସିହା ସୁଦ୍ଧା ଅବହେଳିତ
ତଥା ଶୋଷିତ ଦୁଃଖୀ ପିଲାମାନଙ୍କୁ ତାଙ୍କର ଅଧିକାର
ଫେରାଇ ଦିଆଯିବା ପାଇଁ ବ୍ୟବସ୍ଥା ହେଉଛି। ପିଲାଙ୍କ
ଅଧିକାରଗୁଡ଼ିକୁ ସୁରକ୍ଷା ଦେବା ଉଦ୍ଦେଶ୍ୟରେ ଆମ ସରକାର
ମଧ୍ୟ ଅନେକ ଗୁଡ଼ିଏ କାର୍ଯ୍ୟକ୍ରମ ହାତକୁ ନେଇଛନ୍ତି। ମାଗଣା
ସ୍ୱାସ୍ଥ୍ୟ ସେବା, ମାଗଣା ଶିକ୍ଷା ଓ ମଧ୍ୟାହ୍ନ ଭୋଜନ ତଥା
ଶିଶୁ ଶ୍ରମିକ ପ୍ରଥା ଉଚ୍ଛେଦ ଭଳି କେତେକ କଲ୍ୟାଣକର
କାର୍ଯ୍ୟକ୍ରମ ପିଲାମାନଙ୍କୁ ତାଙ୍କର ଅଧିକାର ଫେରାଇ
ଦେବାରେ ସମର୍ଥ ହୋଇ ପାରିଛି। ପିଲାମାନେ ନିଜର
ଅଧିକାର ସଂପର୍କରେ ସଚେତନ ନହେଲେ, ଏସବୁ
କାର୍ଯ୍ୟକ୍ରମର ସୁଫଳ ମିଳିପାରିବ ନାହିଁ।

ଏହି ପୁସ୍ତକରେ ପିଲାମାନଙ୍କୁ ତାଙ୍କର ଅଧିକାର
ସଂପର୍କରେ ସଚେତନ କରିବାକୁ ମୁଁ ଚେଷ୍ଟା କରିଛି।

ବିନୀତ ଲେଖକ

# ନିଜ ଅଧିକାର ଜାଣିଛି ମୁହିଁ

## (ଶିଶୁର ଅଧିକାର)

### ଏଥିରେ ଅଛି


| | କବିତା | ପୃଷ୍ଠା |
|---|---|---|
| ୧. | ନିଜ ଅଧିକାର ଜାଣିଛି ଯିଏ | ୫ |
| ୨. | ଅମୃତ ବୋଲି ଜାଣ | ୮ |
| ୩. | ବଢ଼ିବାକୁ ମୋତେ ଦିଅ | ୧୦ |
| ୪. | ଦୁଃଖ ହୋଇଲା ଦୂର | ୧୨ |
| ୫. | ସଭିଏଁ ପାଠ ପଢ଼ିବେ | ୧୪ |
| ୬. | ପୁଅ କି ଝିଅ, ବାଛ ବିଚାର ନାହିଁ | ୧୭ |
| ୭. | ମନଟା ପୂରେ ନାହିଁ | ୨୧ |
| ୮. | ଫୁଲ ଫୁଟିବ କେମିତି | ୨୩ |
| ୯. | ଏ କଥା ସଭିଙ୍କୁ କୁହାଯିବ | ୨୬ |
| ୧୦. | ଆମରି ମନ- ଫୁଲ ସମାନ | ୨୯ |






ଆମେ ଶିଶୁ ଯେତେ ଫୁଲ ସମାନ,
ଆଗାମୀ ଦିନର ବୀର ସଇନ ।

ଆମରି ହସରେ ଦୁନିଆ ହସେ,
ଆମରି ଆଖିରେ ସରଗ ଦିଶେ ।

# ନିଜ ଅଧିକାର ଜାଣିଛି ଯିଏ





ଆମ ଅଧିକାର ପାଠ ପଢ଼ିବୁ,
ପାଠ ପଢ଼ି ଭଲ ମନ୍ଦ ଜାଣିବୁ ।
ଦେହକୁ ପୋଷାକ ପେଟକୁ ଦାନା,
ଖେଳିବାକୁ କେବେ ନଥିବ ମନା ।



ବଡ଼ମାନେ ଦେବେ    ସୁଯୋଗ-ସ୍ନେହ,
ସୁରକ୍ଷା ପାଇବୁ    ନଥିବ ଭୟ ।
ସବୁପିଲା ରହୁଥିବେ    ନୀରୋଗ,
ବଢ଼ିବାକୁ ପାଉଥିବେ    ସୁଯୋଗ



ଆମ ମନକଥା    ଆମ ଭାବନା,
ଗୁରୁଜନ ସଙ୍ଗେ    ନୁହେଁ ତୁଳନା ।



ନିଜ ଅଧିକାର    ଜାଣିଛି ଯିଏ,
ତାକୁ ଅଟକାଇ    ପାରିବ କିଏ ?



ଆମରି ମର୍ଯ୍ୟାଦା ଆମରି ସୁଖ,
ହଟାଇ ପାରିବ ମଣିଷ ଦୁଃଖ ।

# ଅମୃତ ବୋଲି ଜାଣ

ଗୋପାଳ ଭାଇରେ ଗୋପାଳ ଭାଇ,
ବାଛୁରି ବାନ୍ଧିକି ଦୁହୁଁଛ ଗାଇ,
ଅଳପ ଟିକେ ଥାଉ ।
ମାଆର କ୍ଷୀର ଛୁଆର ପାଇଁ,
ବାଛୁରୀ ଟିକେ ପିଉ ।



ଛୁଆ ଖାଇଥିଲେ ମାଆର କ୍ଷୀର
ଶକତି ବଢ଼ଇ ନଥାଏ ଡର ।
ମୋ କଥା ପଦେ ଶୁଣ,
ମାଆର କ୍ଷୀର ଛୁଆର ପାଇଁ-
ଅମୃତ ବୋଲି ଜାଣ ।





ମାଆଠାରୁ ମୁହିଁ ଖାଇଛି କ୍ଷୀର,
ସେହି କ୍ଷୀର ବଳେ ହୋଇଛି ବୀର
ନାହିଁ ତ ରୋଗ ଦାଉ,
ମାଆ କ୍ଷୀରଠାରେ ସବୁଛୁଆଙ୍କର
ପୂରା ଅଧିକାର ଥାଉ ।







# ବଢ଼ିବାକୁ ମୋତେ ଦିଅ



ଅଜା କହୁଥିଲେ -- ଟିକି ସୂରୁଜଟି
ଦେହରେ ବହୁତ ବଳ,
ସେହି ବଳ ପାଇ ଦୁନିଆ ହସଇ
ସାଗରରୁ ଆସେ ଜଳ ।



ଆକାଶର ମେଘ ଖରା, ଶୀତ, ବାଆ
ସବୁର କାରଣ ଯିଏ,
ଗଛ ଲତା ଆଉ ଜୀବର ଜୀବନ
ଟିକି ସୂରୁଜଟି ସିଏ ।
ତୁହି ସିନା ଆଜି କୁନି ସୂରୁଜଟି
କାଲିକୁ ହୋଇବୁ ବଡ଼,
ଦୁନିଆର ଦୁଃଖ ଅନ୍ଧାର ହଟେଇ
ଦୂରେଇ ପାରିବୁ ଝଡ଼ ।



ଆଇ କହୁଥିଲେ -        ତୁହି ସିନା ଏକା-
ଦ୍ୱିତୀୟା ଚାନ୍ଦଟି ମୋର
ବଢ଼ି ବଢ଼ି ଦିନେ        ପୂନେଇଁ ରାତିକୁ
ଅନ୍ଧାର କରିବୁ ଦୂର ।



ଟିକି ସୂରୁଜ ମୁଁ        ଦ୍ୱିତୀୟା  ଚାନ୍ଦଟି
ଶିଶୁ ସଭିଙ୍କର ପ୍ରିୟ ।
ଦୁନିଆର ଦୁଃଖ        ଦୂର କରିବି ମୁଁ
ବଢ଼ିବାକୁ ମୋତେ ଦିଅ ।



ଡଉଲ ଡାଉଲ ଝିଅଟି-
ତାର ନାଆଁଟି ଫୁଲ,
ନାଚ, ଗୀତ ଆଉ ପାଠରେ-
ଥିଲା ସବୁଠୁ ଭଲ ।
କେଜାଣି କାହିଁକି କେମିତି-
ତାକୁ ପୋଲିଓ ହେଲା,
ବଡ଼ ଭୟଙ୍କର ରୋଗ ସେ-
ଗୋଡ଼ ଅଚଳ କଲା ।

## ଦୁଃଖ ହୋଇଲା ଦୂର



ଡାକ୍ତର କହିଲେ- ଡ଼ି.ପି.ଟି-
ଦେଲ ନାହିଁ କାହିଁକି ?
ମାଗଣାରେ ମିଳେ ଔଷଧ-
ତୁମେ ଜାଣିନାହଁ କି ?
ସବୁପିଲା ହେବେ ନୀରୋଗ-
ନେବେ ମାଗଣା ଟିକା,
ସଭିଏଁ ପାଇବେ ଚିକିତ୍ସା-
ମନେ ନଥିବ ଦକା ।




ଫୁଲକୁ ହୋଇଛି ପୋଲିଓ-
ଏ'ତ ଆରମ୍ଭ ବେଳ,
ଉପଚାର କଲେ ନିଶ୍ଚୟ-
ସିଏ ହୋଇବ ଭଲ ।



ଏଇ ଦେଶ ସିନା ଆମର-
ଆମେ ସବୁ ଦେଶର,
ସକଳେ ରହିବେ ନୀରୋଗ-
ଅଧିକାର ଆମର ।

ଔଷଧ ଦେଇ ଡାକ୍ତର-
କରିଲେ ଉପଚାର,
ଫୁଲ ଭଲ ହୋଇ ଆସିଲା-
ଦୁଃଖ ହୋଇଲା ଦୂର ।

# ସଭିଏଁ ପାଠ ପଢ଼ିବେ



ମୋ' ନାଆଁଟି ଜାନିଆଁ,
ବଣ ମୁଲକେ ଆମରି ଘର-
ଲାଗଇ ବଡ଼ ଛାନିଆଁ ।
ଧନୁତୀର ମୋ' ହାତରେ,
ବଣ, ପାହାଡ଼ ଘୂରିବୁଲେ ମୁଁ-
ଖରା, ବରଷା, ଶୀତରେ ।

ପାଠ ଶାଠ ମୁଁ ପଢ଼ିନି,
କିଏ ବା ମୋତେ ବତେଇ ଦେବ-
ଭଲମନ୍ଦ ମୁଁ ଜାଣିନି ।
ମୋ' ପୁଅ ନାଁ' ମନୁଆ
ପାଠ ପଢ଼ି ସେ ମଣିଷ ହେବ-
ଦେଖିବ ନୂଆ ଦୁନିଆ ।





ରଖିବ ଦେଶ ଖବର,
ବୁଦ୍ଧିରେ ସିଏ ଆଗୁଆ ହୋଇ-
କାମରେ ହେବ ଜବର ।



ସିଏ ବି ସବୁ ପାରିବ,
ସୁଖ ସୁବିଧା ଯୋଗାଇ ଦେଲେ-
ଦୁଃଖ ଆମର ସରିବ ।

ସବୁ ପିଲା ତ ସମାନ,
ଭେଦ ଭାବନା ରହିବ ନାହିଁ -
ଅଭାବ ହେବ ପୂରଣ ।





ସଭିଏଁ ପାଠ ପଢ଼ିବେ,
ନୀରୋଗ ରହି ସୁଖରେ ଥାଇ
ନିଜ ଦେଶକୁ ଗଢ଼ିବେ ।



ଅଧିକାର ତ ତାଙ୍କର
ସୁଖ ସୁବିଧା ଯୋଗାଇ ଦେବା ।
କାମଟି ହେଲା ଆମର ।

# ପୁଅ କି ଝିଅ, ବାଛ ବିଚାର ନାହିଁ



ବନ୍ଦନା ନାମେ କୁନି ଝିଅଟି-
ପାଠ ପଢ଼ାରେ ମନ ।
ମାଆ କହିଲେ- ପଢ଼ା ତୋ' ମନା-
ପାଖରେ ନାହିଁ ଧନ ।

ଘର ପାଇଁଟି          ରୋଷେଇ ଶିଖ-
କାମରେ ହେବୁ ସାହା,
ପାଠ ପଢ଼ିଲେ          ଝିଅ ପିଲାଟା-
ବେକାର ହେବୁ ଯାହା ।



ଝିଅ ଜନମ          ପରଘରକୁ-
ରୋଷେଇଶାଳେ କାମ
ପାଠ ପଢ଼ାରେ          ଖରଚ ସାର-
ମିଳିବ ବଦନାମ ।




ପୁଅଟା ସିନା ପାଠ ପଢ଼ିଲେ-
ରଖିବ ବାପ ନାଆଁ ।
ଚାକିରି କରି ଧନ ଆଣିବ-
ଉଜ୍ଜ୍ୱଳ କରି ଗାଆଁ ।

ବନ୍ଦନା ମାମୁ ବୁଝେଇ ଦେଲେ-
ସେ କଥା କହନାହିଁ ।
ପାଠପଢ଼ାରେ ପୁଅ କି ଝିଅ-
ବାଛ ବିଚାର ନାହିଁ ।

ପୁଅଟା ଯଦି ପାଠୁଆ ହୁଏ-
ଘର ପାଠୁଆ ହେବ,
ଝିଅଟି ଯଦି ପାଠୋଇ ହୁଏ-
ଦେଶ ଆଗେଇ ଯିବ ।

ମାମୁଙ୍କ କଥା ବୁଝିଲେ ମାଆ-
କହିଲେ - ହଉ ପଢ଼,
ପାଠ ପଢ଼ିକି ମଣିଷ ହୁଅ-
ଆମ ଦେଶକୁ ଗଢ଼ ।





ବନ୍ଦନା ଏବେ ପଢୁଛି ପାଠ-
ମନଟା ତାର ଖୁସି ।
ପଢ଼ା ପରେ ସେ କରୁଛି କାମ-
ମାଆଙ୍କ ସଙ୍ଗେ ମିଶି ।



# ମନଟା ପୁରେ ନାହିଁ

କୁନା ଓ ମୁନା ଦୁଇ ସଙ୍ଗାତ
ପାଠ ପଢ଼ନ୍ତି ମିଶି,
ଖେଳ ବେଳରେ ଖେଳନ୍ତି ଖେଳ-
ହୁଅନ୍ତି ହସଖୁସି ।



କୁନାର ମାଆ ବାଢ଼ିଦିଅନ୍ତି-
ଗରମ ଭାତ ଡାଲି,
ଶରଧା କରି କୋଳେ ବସାଇ-
ଖୁଆନ୍ତି ଗେଲ କରି ।
ମୁନାର ମନ ଦୁଃଖେଇ ଯାଏ-
ଭାବେ ମଉନ ହୋଇ,
ଚାକିରି ପାଇଁ ମାଆଙ୍କଠାରୁ-
ସ୍ନେହ ମିଳଇ ନାହିଁ ।
ବାପା ଯାଆନ୍ତି ସକାଳ ବେଳୁ
ଫେରିବା ତାଙ୍କ ଡେରି-
ତରବରକି ମାଆ ଯାଆନ୍ତି-
ଫେରନ୍ତି ମନ ମାରି ।






ଦିନଟା ଯାକ ଅଫିସ କାମ-
ମନଟା ହରବର,
କଥା କଥାକେ ମାଆ ଆମର-
ରାଗରେ ଗରଗର ।
ମୁଠାକୁ ମୁଠା ଆସୁଛି ଟଙ୍କା-
ନାହିଁ ତ ଘରେ ସୁଖ,
ଚାକର ପିଲା ସାହା ଭରସା-
ଚାହିଁଲେ ଦିଏ ଦୁଃଖ ।



ମନଟା ମୋର ବିକଳ ହୁଏ-
ସ୍ନେହ ଟିକିଏ ପାଇଁ,
ମାଆ କୋଳରେ ବସି ଯାଆନ୍ତି-
ମାଆ ତ ଘରେ ନାହିଁ ।
ଧନରତ୍ନେ ଘର ପୂରୁଛି-
ମନଟା ପୂରେ ନାହିଁ ।
ମନର କଥା ବୁଝିବ କିଏ-
କଅଁଳ ଶିଶୁ ମୁହିଁ ।

# ଫୁଲ ଫୁଟିବ କେମିତି ?



ଦିନେ ଫୁଲ କଢ଼ିଟିଏ-
କହେ ମୁଣ୍ଡ ହଲାଇ,
ମାଳୀ ମଉସା ହେ, ମୋତେ-
ଦେବନାହିଁ ଛିଣ୍ଡାଇ ।
ବଞ୍ଚାଇ ରଖ ମଉସା-
କଣ୍ଟାବାଡ଼ ଦେଇ କି,
କାଲି ଫୁଟିବି ମୁଁ କେତେ-
ରଙ୍ଗ ରୂପ ନେଇ କି ।
ବାସ ବିତରିବି ସିନା-
ଫୁଲ ହୋଇ ଫୁଟିଲେ,
ମୋ ଜୀବନ ଧନ୍ୟ ହେବ-
ବିଭୁ ପାଦେ ଲୋଟିଲେ ।



ମାଳୀ କହେ- ଫୁଲକଢ଼ି !
ସେ କଥା ମୁଁ ଜାଣିଛି,
ତୋ' ସୁରକ୍ଷା ପାଇଁ ମୁହିଁ-
କଣ୍ଟାବାଡ଼ ଆଣିଛି ।

ଲଗାଇଲି ଯତନରେ-
ତୋର ମାଆ ଗଛକୁ,
ଖତ, ସାର, ବାଡ଼ ଦେଲି-
ତା'ର ଆଗ ପଛକୁ ।

ଔଷଧ ଦେଲି ରୋଗ-
ପୋକ ଦାଉ ସରିଲା,
ଆଜି ଡାଳେ ଡାଳେ ତା'ର-
ଫୁଲ କଢ଼ି ଧରିଲା ।

ତୁହି ଆଜି କଢ଼ିଟିଏ-
ଫୁଲ ହେବୁ କାଲିକି,
ତୋର ହସ ଦେଖୁଥିବି-
ବଗିଚାରେ ବୁଲିକି ।



ସୁରକ୍ଷା ପାଇଲେ ଶିଶୁ-
ବଡ଼ ହୁଏ ଯେମିତି,
ସୁରକ୍ଷା ନଦେଲେ ଫୁଲ-
ଫୁଟିବ ବା କେମିତି ?

## ଏକଥା ସଭିଙ୍କୁ କୁହାଯିବ

ଦଶବରଷର ପିଲାଟିଏ,
ଅଣ୍ଟାରେ ଭିଡ଼ିଛି ଗାମୁଛା ଖଣ୍ଡିଏ-
ମୁଣ୍ଡରେ ଲଦିଛି ଝୁଡ଼ିଟିଏ ।
ଶିଶୁ ଶ୍ରମିକ ସେ ବଳରାମ,
ବଳିଆ ନାଆଁରେ ପରିଚିତ ଆଜି-
ହଜିଯାଇଛି ତା' ଶୁଭନାମ ।



ବାପା ନାହିଁ କିଏ ହେବ ସାହା ?
ମାଆ ଥିଲେ ତାର ଲୁହ ପୋଛିଦେଇ-
କହିଥାଆନ୍ତେ ସେ ଆହା ଆହା ।



ସାରାଦିନ କାମ କରେ ସିଏ,
ମଜୁରି ପାଇଲେ ଭାଇ-ଭଉଣୀଙ୍କ-
ପେଟକୁ ଆହାର ଆଣିଦିଏ ।

ଭୁଲିଯାଇଛି ସେ ହସ ଖେଳ,
ଖଟି ଖଟି ତାର ଅଣ୍ଟା ବାଙ୍କିଯାଏ-
ଖୁସି ଗପ ପାଇଁ ନାହିଁ ବେଳ ।

ଏତେ ଦୁଃଖ ତାକୁ ଦେଲା କିଏ ?
ସରକାରଙ୍କର ନୂଆ ଯୋଜନାରେ-
ପାଠ ପଢ଼ିବାକୁ ଯିବ ସିଏ ।



ଆମରି ସାଙ୍ଗରେ ସାଙ୍ଗ ହେବ,
ଶିଶୁ ଶ୍ରମ ପ୍ରଥା ଦୋଷ ବୋଲି ଗଣା-
ଏକଥା ସଭିଙ୍କୁ କୁହାଯିବ ।



ଝୁମୁରୁ ଝାଇଁରେ ଝୁମୁରୁ ଝାଇଁ,
ଫୁଲ ଫୁଟେ କୁହ କାହାର ପାଇଁ ?

ଫୁଲ ତ ଫୁଲ ନାହିଁ ତା' ମୂଲ,
ଫୁଲକୁ ଦେଖିଲେ ଲାଗଇ ଭଲ ।
ତାରି ରୂପ ରଙ୍ଗ- ମିଠା ମିଠା ଢଙ୍ଗ
କୋଟି ମନପ୍ରାଣ ଦିଏ ସେ ଛୁଇଁ ।
ଝୁମୁରୁ ଝାଇଁରେ ଝୁମୁରୁ ଝାଇଁ ।

# ଆମରି ମନ - ଫୁଲ ସମାନ



ଟିକି ଫୁଲଟିର ଅଳପ ବାସ-
ସଜଫୁଟା ଫୁଲ ମୁରୁକି ହସ,
ଆଜିର କଳିକା କାଲିର ସୁରଭି-
ବାଣ୍ଟିବାରେ ପର ଆପଣା ନାହିଁ ।
ଝୁମୁରୁ ଝାଇଁରେ ଝୁମୁରୁ ଝାଇଁ ।

ଆମେ ଯେତେ ଶିଶୁ ଫୁଲ ସମାନ,
ପର ପାଇଁ ଗଢ଼ା ଆମ ଜୀବନ ।





ଫୁଲ ପରି ଆମେ ନିଜ ନିଜ ଗୁଣେ-
ଦୁନିଆ ମନକୁ ନେବାରେ ମୋହି ।
ଝୁମୁରୁ ଝାଇଁରେ ଝୁମୁରୁ ଝାଇଁ ।


ନିଜ ଅଧିକାର ଜାଣିଛି ମୁହିଁ,
ମୋତେ ଆଉ ଠକି ପାରିବ ନାହିଁ ।



ଲେଖକ ଡକ୍ଟର କୃତ୍ତିବାସ ନାୟକ ଜଣେ ସୃଜନଶୀଳ ସ୍ରଷ୍ଟା ତଥା ଗବେଷକ ଭାବେ ସୁପରିଚିତ । ଏ ଯାବତ୍ ତାଙ୍କର ୫୦ଟି ପୁସ୍ତକ ପ୍ରକାଶିତ । ଦୁଇଖଣ୍ଡ ଗଳ୍ପ ସଂକଳନ 'ସଦାନନ୍ଦ ବାବୁଙ୍କ ସଂସାର' ଓ 'ଶୁଣିମା ହେଉ' ସବୁ ଶ୍ରେଣୀର ପାଠକଙ୍କ ନିକଟରେ ଲୋକପ୍ରିୟତା ହାସଲ କରିପାରିଛି । 'ବଣଭୋଜି' ପୁସ୍ତକଟି ସର୍ବଭାରତୀୟ ପ୍ରତିଯୋଗିତାରେ ଶ୍ରେଷ୍ଠ ବିବେଚିତ ହୋଇ ଜାତୀୟ ପୁରସ୍କାର ଲାଭ କରିଛି । ଶିଶୁ ସାହିତ୍ୟର ଗଳ୍ପ ଉପରେ ସେ ଗବେଷଣା କରି ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରୁ ପି.ଏଚ୍.ଡି. (କଳାଭୂଷଣ) ଲାଭ କରିଛନ୍ତି । ସମ୍ବଲପୁର ବିଶ୍ୱବିଦ୍ୟାଳୟରେ ସେ ଡି.ଲିଟ୍. (ସାହିତ୍ୟ ଭୂଷଣ ) କାର୍ଯ୍ୟ କରୁଛନ୍ତି । ଉତ୍କଳ ବିଶ୍ୱବିଦ୍ୟାଳୟ ତରଫରୁ ସେ ଜଣେ ଗବେଷକ ମାର୍ଗଦର୍ଶକ (ଗାଇଡ୍) ଭାବେ କାର୍ଯ୍ୟ କରୁଛନ୍ତି । ତାଙ୍କ ଦ୍ୱାରା ଶିଶୁ ନୟନ, ଆମେ ଶିଶୁ ଓ ଶିଶୁ ରାଇଜ ପତ୍ରିକା କୋରାପୁଟ ଜିଲ୍ଲାରୁ ପ୍ରକାଶିତ ହେଉଥିଲା । ସଂପ୍ରତି ସେ ଆକାଶବାଣୀର ଜଣେ ବରିଷ୍ଠ କାର୍ଯ୍ୟକ୍ରମ ନିଷ୍ପାଦକ ଭାବେ କାର୍ଯ୍ୟରତ । 'ଅରୁଣ-ତରୁଣ' ସଂଗଠନ କର୍ମଶାଳା ମାଧ୍ୟମରେ ସେ ପିଲାଙ୍କୁ ସୃଜନଶୀଳ ସାହିତ୍ୟ ସୃଷ୍ଟି ଏବଂ ନିର୍ଭୁଲ ରଚନା ସଂପର୍କୀୟ ଶିକ୍ଷା ପ୍ରଦାନ କରୁଛନ୍ତି ।

